# ଶ୍ରୀ ଅବଧବିହାରୀ

## ସହିଦ ଭଗତ ସିଂ

ଭାଷାନ୍ତର

ଅଧ୍ୟାପକ ନୀଳମଣି ସାହୁ

*(ଏହି ଲେଖାଟି ଭଗତ ସିଂ ''ବିଦ୍ରୋହୀ'' ଛଦ୍ମନାମରେ ଲେଖିଥିଲେ ।)*

ବି. ଏ. ପାସ୍ କରିବା ପରେ ସେ ଲାହୋର ସେଣ୍ଟ୍ରାଲ୍ ଟ୍ରେନିଙ୍ଗ୍ କଲେଜରୁ ବି. ଟି. ପାସ୍ କରିଥିଲେ । ସେ ଜଣେ ବୁଦ୍ଧିମାନ ଓ ଚତୁର ଯୁବକ ଥିଲେ । ଜଜ୍ ମଧ୍ୟ ଫଇସଲାରେ କହିଥିଲେ:

''Avadh Behari is only 25 years of age but he is a highly educated and intelligent man.'' (''ଅବଧବିହାରୀଙ୍କ ବୟସ ମାତ୍ର ୨୫ ବର୍ଷ, ହେଲେ ସେ ଜଣେ ଉଚ୍ଚ ଶିକ୍ଷିତ ଓ ବୁଦ୍ଧିମାନ ଲୋକ ।'')

କଲିକତାର ରାଜା ବଜାରରୁ ପତା ମିଳିଯିବା ପରେ ତାଙ୍କୁ ଅମୀରଚନ୍ଦଙ୍କ ଘରୁ ହିଁ ଗିରଫ କରାଗଲା । ସେହି ସମୟରେ ୟୁ. ପି. ଓ ପଞ୍ଜାବର ନେତୃତ୍ୱ ତାଙ୍କରି ହାତରେ ଥିଲା । ସଚୀନ୍ଦ୍ର ବାବୁ *''ବନ୍ଦୀ ଜୀବନ''* ରେ ତାଙ୍କର ପ୍ରଶଂସା ମୁକ୍ତକଣ୍ଠରେ କରିଛନ୍ତି । ସେ ସାଧାରଣତଃ ନିମ୍ନଲିଖିତ ପଦ୍ୟଟିକୁ ଗାଉଥିଲେ:

ଏହସାନ୍ ନାଖୁଦା କା ଉଠାଏ ମେରୀ ବଲା,
କିଶ୍ତି ଖୁଦା ପୈ ଛୋଡ୍ ଦୂଁ ଲଙ୍ଗର୍ କୋ ତୋଡ୍ ଦୂଁ!
(ଈଶ୍ୱରଙ୍କ କୃପା କରେନା ତ ମୋର ଦୁଃଖ ଲଘୁତର,
ତାଙ୍କ ଭରସାରେ ଛାଡ଼ି ଡଙ୍ଗାଟିକୁ ଭାଙ୍ଗିବି ଲଙ୍ଗର!)

ଅଦାଲତରେ ତାଙ୍କୁ ମୋଟ ଉପରେ ତେରଟି ଅପରାଧରେ ଅଭିଯୁକ୍ତ କରାଗଲା । କୁହାଗଲା ଯେ ଲାହୋରର ଲରେନ୍ସ ଗାର୍ଡ଼େନର ବୋମାର ଟୋପି ବସନ୍ତକୁମାରଙ୍କ ସହ ମିଶି ସେ ଲଗେଇ ଥିଲେ ଓ ତହିଁରେ ତାଙ୍କର ପୂରା ହାତ ଥିଲା।

ତାଙ୍କୁ ଫାଶୀ ଦଣ୍ଡ ମିଳିଲା । ଯେଉଁ ଦିନ ଫାଶୀ ହେବାର ଥିଲା, ସେହି ଦିନ ଜଣେ ଇଂରେଜ ଲୋକ ତାଙ୍କୁ ପଚାରିଲେ — ''ଆପଣଙ୍କର ଶେଷ ଇଚ୍ଛା କଅଣ?'' ସେ ଉତ୍ତର ଦେଲେ — ''ଏହା ଯେ ଇଂରେଜ ସାମ୍ରାଜ୍ୟ ନଷ୍ଟ ଭ୍ରଷ୍ଟ ହେଇଯାଉ!'' ଇଂରେଜ ଲୋକଟି ପୁଣି କହିଲେ — ''ଶାନ୍ତ ହୁଅନ୍ତୁ । ଆଜି ତ ଶାନ୍ତିପୂର୍ବକ ପ୍ରାଣ ଦିଅନ୍ତୁ, ଏବେ ଆଉ ସେହି କଥାରୁ ଲାଭ କଅଣ?'' ଏହା ଶୁଣି ସେ ଉତ୍ତର ଦେଲେ — ''ଆଜି କି ଶାନ୍ତି? ମୁଁ ତ ଚାହୁଁଛି ନିଆଁ ଜଳୁ, ଚାରିଆଡ଼େ ନିଆଁ ଜଳୁ, ତୁମେ ଜଳିଯାଅ, ଆମେ ବି ଜଳୁ ଆଉ ଆମର ଗୋଲାମୀ ଜଳୁ, ଏବଂ ଅନ୍ତରେ ଭାରତ ସ୍ୱର୍ଣ୍ଣାଭ ହୋଇ ରହିଥାଉ ।''

ଫାଶୀ ସମୟରେ ସେ ନିଜେ ଜାଦୁ କଲା ଭଳି ଫାଶୀ ଦଉଡ଼ିଟିକୁ ଗଳାରେ ପକେଇ ଦେଲେ ଓ ''ବନ୍ଦେମାତରମ୍'' ଧ୍ୱନୀ ଦେଇ ହସି ହସି ବିଦା ହୋଇଗଲେ!

— ବିଦ୍ରୋହୀ

e-mail: neelamanisahu@rediffmail.com
୯୪୩୭୫୧୫୭୮୨